# ହନୁମାନ ଚାଳିଶା ।

ଭକ୍ତ ୰ ଶ୍ରୀ ତୁଲସୀଦାସଙ୍କ

ରଚିତ

ଶ୍ରୀମାନ ଦେବୀ [illegible] 

ଦ୍ୱାରା

ଅନୁବାଦିତ ଓ ପ୍ର[illegible] 

PRINTED
BY
The Fraser Printing & Publishing
Co., Ltd.
SAMBALPUR,
1924.

ମୂଲ୍ୟ ——— ପଇସା



ବନ୍ଧୁବର୍ଗ ପ୍ରାଚୀନ ଭୂତକାଳୀୟ ପ୍ରଶଂସନୀୟ ଶ୍ରୀ ତୁଳସୀ ଦାସଙ୍କର ବିରଚିତ ହିନ୍ଦୀଭାଷାରେ ହନୁମାନ ଅଷ୍ଟକ ରହିଥିଲା ତାହା ଉତ୍କଳୀୟ ପାଠରେ ଅସୁବିଧାଜନକ ହେଉଥିବା ସେହି ଉତ୍କଳ ଭାଷାରେ ଅନୁବାଦ୍ କରି ଆପଣମାନଙ୍କ ସମ୍ମୁଖ କରୁଅଛି । ଯେଉଁମାନଙ୍କର ହନୁମାନଙ୍କର ଚରିତ୍ରରେ ଶ୍ରଦ୍ଧା ଥାଏ ସେମାନଙ୍କର ପ୍ରୀତିବୋଧ ହେବ ଭାଇମାନେ ! ଯାହାର ଇଚ୍ଛା ହେବ ନେଇ ଅନ୍ତରଙ୍କର ପୂର୍ବକ ପଠନ କରିବା ହେଉନ୍ତୁ । ଇତି

ଶ୍ରୀମାନ୍ ବେହାରି ଦାସ ମହନ୍ତ
ମହାଗ୍ରାମ ସମ୍ବଲପୁର
ଶ ସୋପାଳଜ ୫୦

# ହନୁମାନ ଚାଳିଶା ।

## ରାଗ ( ରାମକେରୀ )

ଶ୍ରୀଗୁରୁ ଚରଣ ସରସି    ଜରେ ରହୁ ମୋଧ୍ୟାନ ।
ତାଦାତ୍ମ୍ୟ ଭୃଙ୍ଗ ସ୍ୱରୂପରେ    କରଇଁ ଆସ୍ୱାଦନ । ୧ ।
ସେହି ପାଦରଜ ମୁକୁର    କାନ୍ତି ଆତ୍ମାକୁ ସୁନ୍ଦର ।
ଖଣ୍ଡିବ ଅଶେଷ କଳୁଷ    ଭବଁ ଯିବ ନିସ୍ତର । ୨ ।
ଗୁରୁ ରୂପୀଯେ ରଘୁରାଣ    ବର୍ଣ୍ଣିବ କୀର୍ତ୍ତିପାର ।
ରାମଚନ୍ଦ୍ର ଗୁଣ ଗାଇଣ    ବାଲ୍ମୀକି ସେ ଉଦ୍ଧାର ।୩।
ଧର୍ମାର୍ଥ କାମ ମୋକ୍ଷାଦି    ହେବା କର୍ତ୍ତା ଈଶ୍ୱର ।
ଦାସ ଅନୁଚର ତାଙ୍କ    ଅନନ୍ତ ମହାବୀର । ୪ ।
ତାଙ୍କଠନେ ଫଳ ପାଇବା    ନିଷ୍ଠା ତତ୍ତ୍ୱ ରଖି ।
କୃପାକରି ଫଳଦ ହେବେ    ଅନନ୍ୟଭକ୍ତତା ଦେଖି । ୫ ।
ଧ୍ୟାନରେ ପବନ ନନ୍ଦନ    ମୋ ନିବେଦନ ଘେନ ।
ବଳ କୌଶଳ ବିଦ୍ୟାଧନ    ଦେଇ କ୍ଲେଶ ଖଣ୍ଡନ । ୬ ।
ଅବଶ୍ୟ ସୁଦୟା କରିବେ    ଏହି ଭରସା ମୋର ।
ହନୁମାନ ସ୍ତୁତି ଶୁଣିଲେ    ଦୟାହେବ ଶଙ୍କର । ୭ ।

ରାମଚନ୍ଦ୍ରଙ୍କ ପରିକର , ଅସୀମ ବଳଶାଳୀ ।
ଅଞ୍ଜନୀ କୁମାର ପବନ ନନ୍ଦନ ଚଢ଼ାବଳୀ । ୮ ।
ବଜ୍ରମରୂପେ ମହାବୀର ବଜ୍ର ଅଙ୍ଗ ସେ ଲୋକ ।
ଅଧର୍ମୀଙ୍କର ହନ୍ତା ପ୍ରଭୁ ଧର୍ମଧାରକ ପ୍ରଭୁ । ୯ ।
କନକ ବର୍ଣ୍ଣ ଶୋଭାନ୍ୱିତ ଜ୍ୟୋତିଷ୍ମତ ପ୍ରଖର
ବଜ୍ଞାନ ପୂର୍ଣ୍ଣ ଅଙ୍ଗେ ଭବ କର୍ଣ୍ଣେକୁଣ୍ଡଳ ସାର । ୧୦ ।
କୁଞ୍ଚିତ କେଶରେ ଜଡ଼ିତ କନକ କାନ୍ତି ଅଛି ।
ହସ୍ତରେ ବଜ୍ର ଶୋଭୁଅଛି ଜୟ ପତାକା ଶୋଭି । ୧୧ ।
ଯଜ୍ଞୋପବିତ ସ୍କନ୍ଧଦେଶେ କଟିବନ୍ଧ କାଛନ୍ଦା ।
ଶିବାତ୍ମଜ କେଶରୀ ପୁତ୍ର ତେଜ ପ୍ରଖର ନିଷ୍ଠା । ୧୨ ।
ଚତୁର୍ଦ୍ଦଶପୁରେ ବିଖ୍ୟାତ ବଜ୍ରଙ୍ଗ ନାମେ ଖ୍ୟାତ ।
ଗୁଣ ସାଗର ହେ ଚତୁର ବିଦ୍ୟାପୂର୍ଣ୍ଣ ସୁକାନ୍ତ । ୧୩ ।
ଶ୍ରୀରାମଙ୍କ କାର୍ଯ୍ୟେତତ୍ପର ଅଜ୍ଞାମାତ୍ରେ ତା କରି ।
ରଘୁବରଙ୍କର ଚରିତ୍ର ଶୁଣନ୍ତି ସ୍ନେହ ଧରି । ୧୪ ।
ରାମ ଲକ୍ଷ୍ମଣ ସୀତାଙ୍କର ମନ ମୁଗ୍ଧ କାରକ ।
ସୂକ୍ଷ୍ମରୂପେ ଅଶୋକବନେ ସୀତା ଦର୍ଶନେ ଦେଖ । ୧୫ ।
ବିକଟ ଭୀମାକାର ହୋଇ ଲଙ୍କାକୁ ଦଗ୍ଧ କଲ ।
ଭୀମାକାରେ ପ୍ରଚଣ୍ଡରୂପେ ଅସୁରଙ୍କୁ ମାରିଲ । ୧୬ ।
ଶ୍ରୀରାମଙ୍କ କାର୍ଯ୍ୟେ ତାତ୍ପର୍ଯ୍ୟ କଲପ୍ରେମକୁ ଧର ।
ସଞ୍ଜୀବନୀ ଆଣି ଲକ୍ଷ୍ମଣ ପ୍ରାଣକୁ ରକ୍ଷାକାରୀ । ୧୭ ।

ଶ୍ରୀରାମଚନ୍ଦ୍ର ପ୍ରଭୁଙ୍କର   ଆଲିଙ୍ଗନ ପାଇଲ
ରଘୁନାଥଙ୍କର ପ୍ରଶଂସା   ସୁପାତ୍ର ତୁମ୍ଭେ ହେଲ । ୧୮ ।
ଶ୍ରୀରାମ କହନ୍ତି ହେହନୁ   ତୁଥପରଭୁ ବନ୍ଧୁ ।
ସମ୍ପୂର୍ଣ୍ଣ ସ୍ନେହର ସୁପାତ୍ର   ଶୋଭିତ ପୂର୍ଣ୍ଣଇନ୍ଦୁ । ୧୯ ।
ସହସ୍ର ଅଙ୍ଗ ମେ ରାବଣ   ତୁମ୍ଭଯଶ ଗାଆନ୍ତି ।
ଏହା ପ୍ରକାଶି ରାମଚନ୍ଦ୍ର   ପ୍ରେମାଲିଙ୍ଗନ ଚନ୍ତି । ୨୦ ।
ସନକାଦି ବ୍ରହ୍ମା ନାରଦ   ମୁନିଏ ଆଦି ଗଣ ।
ସରସ୍ୱତୀ ଯମ କୁବେର   ଆବର ଦେବ ଗଣ । ୨୧ ।
ଅନନ୍ତ ଜଗ ପାଲାଦରେ ହୋଇଛନ୍ତି ଖ୍ୟାତ ପନ୍ଥ
ସୁଗ୍ରୀବଙ୍କ ଉପକାର   ରାମଚନ୍ଦ୍ର ମିଳନ । ୨୨ ।
ରାଜପଦ ସେ ଯେ ପାଇଲେ ତୁମ୍ଭବୁଦ୍ଧି କୌଶଳେ ।
ତବ ବୁଦ୍ଧିକ୍ଷାନେ କପୀଶ   ପଦପାଇ ରହିଲେ । ୨୩ ।
ତୁମ୍ଭଜ୍ଞାନରେ ବଜ୍ରଗଣ   ଦେଖିଲେ ସେ ଲଙ୍କେଶ୍ୱର ।
ଚତୁର୍ଦ୍ଦଶ ଲୋକ ଜାଣିଲେ ସମ୍ପୂର୍ଣ୍ଣ କାର୍ଯ୍ୟେ ଖାର । ୨୪
ଦ୍ୱାଦଶ ସହସ୍ର ଯୋଜନେ ରବି ପ୍ରକାଶ ମାନ ।
ଶୈଳ ବନଭୁକେ ମଧୁର   ଫଳ ଜାଣି ଭକ୍ଷଣ । ୨୫ ।
ଶ୍ରୀରାମ ଦତ୍ତ ଅଙ୍ଗୁଳିକା   ପାଇ ମୁଖେ ରଖିଲ ।
ରତ୍ନାକରକୁ ଲଙ୍ଘିଗଲ   ମନେ ଛୋଭ ନ କଲ । ୨୬ ।
ଅସାଧ୍ୟକୁ ସାଧ୍ୟ କରତା   ଅଗମ୍ୟରେ ଗମନ ।
ଛିଡ଼ରେ ଦୁର୍ଗମ ସ୍ଥାନକୁ   ଯିବାକୁ ନାହିଁ ଆନ । ୨୭ ।

ରାମଚନ୍ଦ୍ରଙ୍କ ଦ୍ୱାର ପାଳ    ଶ୍ରୀରାମ ଆଜ୍ଞା ବିନା ।
ପ୍ରବେଶ ହୋଇ ନ ପାରନ୍ତି    ଦେଖି ତୁମ୍ଭ ସାଧନା । ୨୮ ।
ତୁମ୍ଭେ ସୁରକ୍ଷକ ନିର୍ଭୟ    ଚତୁର୍ଦ୍ଦଶ ଭୁବନ ।
ତବ ଶରଣା ପନ୍ନଥିଲେ    ସବୁ ସୁଖ ସମ୍ପୂର୍ଣ୍ଣ । ୨୯ ।
କୋପହେଲେ କାଳେ ଗର୍ଜନେ ତ୍ରିଲୋକ ଭୟଙ୍କର ।
ମହାବୀର ରବ ଶୁଣନ୍ତେ    ସ୍ଥାନ ସେ ତ୍ୟାଗକାରି । ୩୦ ।
ତୁମ୍ଭେ ରକ୍ଷାକର୍ତ୍ତା ଯାହାର    କାହାକୁ ନାହିଁ ଭ୍ରାନ୍ତି ।
ଆପଣଙ୍କ ନିଜ କୋପରେ    ଅପେ ଶାନ୍ତ ରଜନ୍ତ । ୩୧ ।
କୋପହେଲେ କାଳେ ଗର୍ଜନେ ତ୍ରିଲୋକ ଭୟଙ୍କର ।
ଶ୍ମଶାନ ବାସୀଭୂତ ପ୍ରେତ    ନାମ ଶୁଣନ୍ତେ ଡ଼ର । ୩୨ ।
ନାନାକ୍ଳେଶ ରୋଗରୁ ମୁକ୍ତ    କରିବା ସାମର୍ଥ୍ୟତା ।
ନିରନ୍ତର ଧ୍ୟାନ ଧାରକ    ହନୁମନ୍ତ କରତା । ୩୩ ।
ସଙ୍କଟରୁ ମୋକ୍ଷ କରନ୍ତେ    ଅବଶ୍ୟ ବଳବନ୍ତ ।
ଦୃଢ଼ ବିଶ୍ୱାସ ରଖି ହୃଦେ    ଧ୍ୟାନେ ରଖ ନିରତ । ୩୪ ।
ମନ ବଚନ କର୍ତ୍ତବ୍ୟରେ    ରଖିଥିବ ଯେ ଚିତ୍ତ ।
ନାନା ଆପଦରୁ ରକ୍ଷିବେ    ଧାଇଁ ସେ ହନୁମନ୍ତ । ୩୫ ।
ତପସ୍ୱୀ ସୁରକ୍ଷକ ଶ୍ରୀରାମ    ତପୋବନାଧି ବାସୀ ।
ତାହାଙ୍କ କାର୍ଯ୍ୟ ସଫଳକ    ମହାବୀର ହୁଁ ବାସି । ୩୬ ।
ଅନୁଜ୍ଞାନରେ ଆଉ ଦେଖ    ଯାହାର ଯେ କଳ୍ପନା ।
ଇଚ୍ଛାରୁ ବଳକର ଲଭ    ଅଧିକରେ ଭାବନା । ୩୭ ।

କଳି ଯୁଗରେ ହନୁମନ୍ତ  ପ୍ରଖ୍ୟାତ ତୁମ୍ଭ ଅଛ ।
ଜଗତ ଉଜ୍ଜ୍ୱଳ ପ୍ରସିଦ୍ଧ  ହନୁ ପାଇଁ ରହଛ । ୩୮ ।
ସାଧୁ ସନ୍ଥ ଧର୍ମ ରକ୍ଷକ  ତୁମ୍ଭେ ହେ ମହାବୀର ।
ଦାନବ ହନ୍ତା ସେ ହୋଇଣ ରାମଙ୍କ ପ୍ରିୟବର । ୩୯ ।
ବ୍ରହ୍ମବରୂପଣ ଅଷ୍ଟାଙ୍ଗ  ନବ ରସଜ୍ଞ ଜ୍ଞାନ ।
ଜନକାତ୍ମଜା ଆନନ୍ଦରେ  ଦେଇ ଅଛନ୍ତି ଦାନ । ୪୦ ।
ସ୍ତମ୍ଭନ ମୋହନ ଉଚ୍ଚାଟନ ବଶୀକରଣ ସବୁ ।
ରାମଙ୍କ ଅଙ୍ଗେ ଥିବା ଧନ  ଚିହ୍ନିଲେ ତୁ ପାଇବୁ । ୪୧ ।
ଏବର ମିଥିଳା ନନ୍ଦନୀ  ଠାରୁ ପାଇଣ ଅଛ ।
ସହୋଦ୍ର ବନ୍ଧୁ ପ୍ରାପ୍ତ ହୋଇ  ଦାସତ୍ୱ ନେଇ ଅଛ । ୪୨ ।
ତୁମ୍ଭଙ୍କୁ ଭଜିଲେ ଶ୍ରୀରାମ  ଚନ୍ଦ୍ରଙ୍କୁ ସେ ପାଇବ ।
ଜନ୍ମଜନ୍ମାନ୍ତର ଦାରିଦ୍ର୍ୟ  ଦୁଃଖ ପାସୋର ଯିବ । ୪୩ ।
ପ୍ରାଣାନ୍ତେ ଶ୍ରୀରାମଙ୍କବାସ  ବୈକୁଣ୍ଠ ପୁର ଯିବ ।
ଅନ୍ୟଜନ୍ମରେ ହରିଭକ୍ତ  ନିଶ୍ଚୟ ସେ ପାଇବ । ୪୪ ।
ଅନ୍ୟଦେବତାଙ୍କ ଆଶ୍ରୟ  ଯେ କଲେ ନାହିଁ ଲୋଡ଼ ।
ହନୁମନ୍ତଙ୍କ ଆଶ୍ରୟରେ  ପ୍ରାପ୍ତ ଦେବ ଭବ । ୪୫ ।
ସଙ୍କଟ୍ଟୁ ଉଦ୍ଧାରି ଦୁଃଖକୁ  ନାଶିବେ ମହାବୀର ।
ରକ୍ଷି ଶୁଦ୍ଧ ଚିତ୍ତ ସେ ହନୁ ବଳବନ୍ତକୁ ସ୍ମର । ୪୬ ।
ଜୟ ଜୟ ହେ ହନୁମନ୍ତ  ଗୁଣବାରିଧି ସାଗର ।
ଦୟାକର ହେ ଗୁରୁଦେବ  ଜ୍ଞାନ ଦେବା ପ୍ରକାର । ୪୭ ।

ହନୁମନ୍ତଙ୍କର ଶୃଙ୍ଖଳା   ଶତବାର ସ୍ମରିଲେ ।
ସଙ୍କଷ୍ଟ ବନ୍ଧନରୁ ମୁକ୍ତ   ସୁଖ ସମ୍ପଦ ପାଇଲେ । ୪୮ ।
ବନ୍ଦିଜନେ ଯେବେ ହୃଦୟେ   ସ୍ମର ଏହି ଶୃଙ୍ଖଳା ।
ଉମାଗୌରୀ ସାକ୍ଷରେ କହେ ପୂର୍ଣ୍ଣ ହୁଏ ଆଶା । ୪୯ ।
ମହାପୂଜ୍ୟ ତୁଳସୀ ଦାସ   ଶ୍ରୀହରିଙ୍କ କୋଯୁର ।
ଅଟେ ହନୁମନ୍ତ ହୃଦୟୁ   କରିବ ସମୋଦର । ୫୦ ।
ରକ୍ତବର୍ଣ୍ଣ ନେତ୍ର ଗାଜଣା   ଲାଙ୍ଗୁଡ଼ ଭଙ୍ଗାକାର ।
ଦାନବଙ୍କ ଦର୍ପ ଦଳନେ   ବଜ୍ର ଅଙ୍ଗ ସୁନ୍ଦର । ୫୧ ।
ଜୟକାର କର ହେ ହନୁ   ତୁମ୍ଭ ପାଦେ ଶରଣ ।
ସଙ୍କଷ୍ଟ ଧାରକ ଲକ୍ଷଣ   ହର ଏହା ଜଣାଣ । ୫୨ ।
ତୁଳସୀଦାସଙ୍କ ମତର   ଉତ୍କଳ ଭାଷା କରି ।
ଅନୁବାଦରେ ଜଣାଉଛୁ   ଦୀନ ହୀନ ବେହାରି । ୫୩ ।

---

## ସଂକଟମୋଚନ ସ୍ତୋତ୍ର ।

ରାଗ ( ଧ୍ରୁବ )

ବାଲ୍ୟକାଳେ ଭାବ ତ୍ରିମରଯସତ୍ର ରବଙ୍କି ରହିଲ କ୍ଷୁଦ୍ରଲେ ।
ଦିପୁରନ୍ଦରାର ହେଲେ ଅବହେଳ ଅପହଁ ହୁଦ୍ଧାର ନ ଲଭଲେ । ୧ ।

ଦେବତାଦିଗଣ ବାନରରୂପରେ ଜନ୍ମ ସଙ୍କଟମୋଚନ ସେ ଶ୍ରୀବର ।
ତଏ ନ ଜାଣନ୍ତି ତୁମ୍ଭର ବଡ଼ିମା ସଙ୍କଟମୋଚନ ମହାବୀର ।
ବାଳିର ଯେତେବେଳେ ସୁଗ୍ରୀବକୁ ବଧ କରିବାକୁ ଆସିଥିଲେ ।
କାଳରୂପେ ଧରି ସୁଗ୍ରୀବକୁ ନେଇ ରଖିଲ ଋଷ୍ୟମୂକଶୈଳେ ।
ଦ୍ୱାରପାଳ ହୋଇ ଶପଥକୁ ଦେଇ ମୁନି ଶ୍ରେଷ୍ଠଥିଲେ ସେହି ସ୍ଥଳେ
ବୋଲ ଦ୍ୱିଜବେଶ ହୋଇଣ ପ୍ରବେଶ ପ୍ରଭୁସଙ୍ଗ ମେଳ କରାଇଲେ
ସୁଗ୍ରୀବର ଶୋକ କରିଅଛ ନାଶ ମୁହିଁ ତବ ଦାସ କଷ୍ଟହର ।
ତଏ ନଜାଣନ୍ତି ତୁମ୍ଭର ବଡ଼ିମା ସଙ୍କଟ ମୋଚନ ବୀରବର । ୨ ।
ସୀତାଖୋଜିବାକୁ ଅଙ୍ଗଦସଙ୍ଗରେ ମେଳହେବା ସ୍ନେହ ହୃଦୟର ।
ସୁଗ୍ରୀବଗର୍ଜନ ନିଷ୍ଠୁର ବଚନ ଖୋଜ ଅଣିବଥ ମହାବୀର ।
ସମ୍ବାଦ ନ ଅଣି ଯେ ଅସିବ ଜାଣି ପ୍ରାଣହରାଇବ ନିଶ୍ଚେ ଜାଣ । ୩
ବାନ୍ଧକରି ପଣ ସମୁଦ୍ରାଦିସ୍ଥାନ ନପାଇଣ ଚିନ୍ତା ମନକ୍ଷୁଣ୍ଣ ।
ସଙ୍ଗେଥିବା ଜନ ସର୍ବେ ହତଜ୍ଞାନ ତତ୍ତ୍ୱବଣରେ ସ୍ନେହାତୁର ।
ତଏନ ଜାଣନ୍ତି ତୁମ୍ଭର ବଡ଼ିମା ସଙ୍କଟ ମୋଚନ ହନୁବୀର । ୩ ।
କାପଟ୍ୟ ହୃଦୟ ଦେଖାଇବା ଭୟ କଷ୍ଟାବାନ୍ଧ ମନେ ଦଶାନନ ।
ରାକ୍ଷସୀଙ୍କ ଦଳ ରଖିସୀତା ସ୍ଥଳ ପରିଚୟରେ ଶୋକ ଦାରୁଣ ।
ସେହିକାଳ ଜାଣି ଅଚେତେ ବୀର ମଣି ଦାନବଗଣଙ୍କ ହନ୍ତାହେଲ ।
ସ୍ୱାମୀମର୍ମଭାବ ସୀତାଙ୍କର ଠାବ ମୁଦ୍ରିକା ଦେଇ ସନ୍ତୋଷ କଲ ।
ଅଶୋକ ସେବଣ କରିରଣରଣ ଲଙ୍କା ପୋଡ଼ି କଲ ନାରଖାର ।
ତଏ ନଜାଣନ୍ତି ତୁମ୍ଭର ବଡ଼ିମା ସଙ୍କଟ ମୋଚନ ବୀରବର । ୪ ।

ଯୁଦ୍ଧ କାଳବାର୍ତ୍ତ୍ୟ ଲକ୍ଷ୍ମଣବ୍ୟବସ୍ଥା ବକ୍ର ପ୍ରହାରିଲା ସେ ରାବଣ ।
ହୋଇ ହତଜ୍ଞାନ ସମସ୍ତେ ହନୁମ ଔଷଧ ନେବାକୁ ଗଲପୁଣ ।
ସୁଷେଣଙ୍କ ବାଣୀ ହୃଦେ ଧାରାଶୁଣି ଦ୍ରୋଣଗିରି ଉପାଡ଼ି ଆଣିଲ ।
ଆଣି ସଞ୍ଜୀବନୀ ପ୍ରୟୋଗରେ ଜାଣି ଲକ୍ଷ୍ମଣଙ୍କୁ ଜୀବନ୍ୟାସ ଦେଲ ।
ଦେ ଯେ ରଘୁସ୍ୱଣ ସୈନ୍ୟାଦସଙ୍ଗେଣ ଉଚ୍ଚାରିଲେ ଜୟ ଜୟସ୍ୱର ।
ଜଏ ନଜାଣନ୍ତ୍ର ଭୁମ୍ବର ବିହ୍ବଳ ସଙ୍କଷ୍ଟ ମୋଚନ ହନୁବୀର ।୫।
ରାବଣ ଯୁଦ୍ଧରେ ହତଜ୍ଞାନଭରେ ଅହିମାଳ ଶର ପ୍ରହାରିଲା ।
ରଘୁବର ସୈନ୍ୟ ସେନାଗଣବନ୍ଧନ ସମସ୍ତଙ୍କୁ ଅହି ଯୋଡିଥିଲା ।
ଶ୍ରୀରାମ ଲକ୍ଷ୍ମଣ ଦେଖି ହତଜ୍ଞାନ ଭୂମେ ବିଶିପଣ ଯାଇଥିଣି ।
ଗରୁଡ଼ ଆଣିଣ ସଙ୍କଷ୍ଟ ଖଣ୍ଡିଣ ସୈନ୍ୟ ଆନନ୍ଦ ଭୁମ୍ବରି ହେଲେ ।
ରାବଣର ଗର୍ବ କଲଭୂମେ ଖର୍ବ ଆନନ୍ଦ ପ୍ରଫୁଲ୍ଲ ରାମଚନ୍ଦ୍ର ।
ଜଏ ନଜାଣନ୍ତ୍ର ଭୁମ୍ବର ବିହ୍ବଳ ସଙ୍କଷ୍ଟ ମୋଚନ ବାନାବୋର ।୬।
ଭାଇବନ୍ଧୁ ଗଣ କରି ପ୍ରେମଧ୍ୟାନ ଅହିରାବଣ କପଟ କରି ।
ଶ୍ରୀରାମ ଲକ୍ଷ୍ମଣ ପାତାଳ ଭୁବନ ଘେନିଗଲା ଦେବାକୁ ବଳି ।
ଅଭୟ ଭୈରବୀ ରଖାଇଣ ତହିଁ ବଳିଦେବା ଭାବ ସେ ଯେଥିଲା ।
ଭୂମେ ଯାଇକରି ସୈନ୍ୟଚାର ମାରି ଖଣ୍ଡିଲ ତାଣିକି ନାଶଗଲା ।
ପୁଣି କଳ୍ପଗଜା ବଜାଇଣ ବଜା ରାବଣର ହେଲା ନାରଖାର ।
ଜଏ ନଜାଣନ୍ତ୍ର ଭୁମ୍ବର ବିହ୍ବଳ ସଙ୍କଷ୍ଟ ମୋଚନ ନାମବୋର ।୭।
ସୁରନରଙ୍କର କାର୍ଯ୍ୟର ବେଗର ବଡ଼ଲୋକ ତହିଁ ଖ୍ୟାତି ହୁଅ ।
ସାମାନ୍ୟ ଜୋହୁଃଖ ଏହାକୁ ନ ଦେଖ କରୁଛ ବିବେକ ଲାଗେଭଯ୍ୟ ।

ଯେବେ ଅଷ୍ଟପଣ ସଙ୍କଷ୍ଟ ଭଞ୍ଜନ ବେଗେ ଅସିକର ମହାବୀର ।
କଏ ନଜାଣନ୍ତି ତୁମ୍ଭର ବିରୁଦ ସଙ୍କଷ୍ଟ ମୋଚନ ନାମ ତୋର ।୮।
ନିର୍ଦ୍ଦୋଷରେ ପ୍ରାଣ ଲଭୁ କାଶିବାସ ଭକ୍ତିଭାବେ ହନୁମାନ କୀର୍ତ୍ତି ।
କଲେ ସ୍ୱପ୍ନରେ ଗାୟନ ଶୁଣି ହନୁମାନ ରକ୍ଷିଲେ ତୁଳସୀ ଦାସ ଭକ୍ତ ।
ଏହି ଅଷ୍ଟକ ଉଚ୍ଚାରି ସଙ୍କଷ୍ଟରୁ ପାର ଲଭିଲେ ବିଶ୍ୱାସ ଜୀବ ।
ପ୍ରକାଶକ ହେଲେ ସାଧୁ ସନ୍ତ ମେଳେ ସଙ୍କଷ୍ଟ ମୋଚନ ସାରଭାବ ।
ହିନ୍ଦିଭାଷାସ୍ଥିତ ଉତ୍କଳରେ ଯୁକ୍ତ ଅନୁବାଦ ମୋର କହିବାର ।
ବେହାରୀଦାସ କହିଲା ଭକ୍ତମହାବଳୀ ହନୁମାନଙ୍କ ସଦାବୋଧର ।
ଅହେ ମହାବୀର ଭୂମ୍ୟପରକର ସଙ୍କଷ୍ଟ ହରବ ଶୀଘ୍ରତର ।୯।



# ଗଦ୍ୟରେ କବିର କହି ଅଛନ୍ତି ।



ଋଷୁପନ୍ଥ ନାମକ ଏକ ବିଶାଳ ବନ, ତହିଁରେ ଋଷ୍ୟମୂକ ନାମକ ପର୍ବତ ରହିଅଛି । ତନ୍ନ ସରୋବରର ପୁଷ୍କରିଣୀ ମହାପ୍ରେମଦାୟକ ଶୁଭ ସ୍ଥାନଅଟେ । ଗିରି ନିକଟବର୍ତ୍ତୀ ସେଠାରେ ବାନରକନ୍ୟା ଅଞ୍ଜନୀ ଶିବଙ୍କ ଇଚ୍ଛାକରି ତପସ୍ୟା କରୁଥିଲେ । ଅଞ୍ଜନୀ ମହା ତପସ୍ୟାବତୀ ଓ ଶାନ୍ତ-ମତି ସାଧ୍ୱୀ ସତ୍ୟବତୀ ଥିଲେ । ଏକ ସମୟରେ ଅତି ଅନଳ ପ୍ରଖର ମାର୍ତ୍ତଣ୍ଡ କିରଣରେ ଶ୍ରମିତ ହୋଇ ସେଠାରେ ପ୍ରବେଶ ହେଲେ । ଅହୋ କି ଆନନ୍ଦଦାୟକ ! ସରୋବର ସନ୍ନିକଟରେ ନାନାବୃକ୍ଷମାନଙ୍କ ଦ୍ୱାରା ଘନଘନ ପଲ୍ଲବରେ ଛନ୍ନହୋଇ ରହିଅଛି । ବସନ୍ତ ସମୟ ମନମୁଗ୍ଧକାରକରେ ରହିଥିବା ହେତୁ ବସନ୍ତ ତାହାଦେଖି ଶୟନରେ ଇଚ୍ଛା କଲେ । ହଠାତ୍ ସେହି ବସନ୍ତ ପବନ ବାଜି କାମୋଦ୍ଦୀପନ ଅର୍ଥାତ୍ କନ୍ଦର୍ପ ଉଦ୍ଦୀପନରେ ବସନ୍ତର ରେତସ୍ଖଳିତ ହେଲା । ପବନ-ବରକୁ କମଳପତ୍ରଅଣି ମହାଯତ୍ନ ପୂର୍ବକ ପୁତ୍ରଅବାଞ୍ଛା ରଖିଲେ । ସ୍ତ୍ରୀମାନଙ୍କର ଚଞ୍ଚଳମତି ସ୍ୱଭାବ ହେତୁ କାର୍ଯ୍ୟନମଣି କଣ ରଖା ହୋଇ ଅଛି ଭାବି ଅଞ୍ଜନୀ ତାହା ଭକ୍ଷଣ କଲେ । ସେହି ଭକ୍ଷଣରେ ତାଙ୍କର ଗର୍ଭାବସ୍ଥା ହେଲା । କାଳାନ୍ତରେ ଦୈବ ଯୋଗେ ପବିତ୍ରତାରେ ସେଠାକୁ ବସନ୍ତ ଆସିଲେ ପତ୍ର ପୁଡ଼ିଆ ଖୋଜିବସିଲେ ଭାବିଲେ

ଅଗ୍ନିରେ ଦଗ୍ଧ ନ ହୋଇଗଲା , ଏହାଶୁଣି ବିଷାଦଯୁକ୍ତ ହେଲେ ସେଠାରେ ଅଞ୍ଜନୀ କହିଲେ ତୁମ୍ଭେ କିଏ କାହିଁକି କଣ ଖୋଜାହେଉ ଅଛ । ଏହା କହିବାରୁ ପବନ କହିଲେ ମନଃଶାର୍ଯ୍ୟ କମଳ ପତ୍ରରେ ବାନ୍ଧିରଖିଥିଲ । ଏହାକହି ବନରୁ ବାହୁଡଗଲେ । ଅଞ୍ଜନୀ ସେଠାରେଁ ମନ ମଳନତା କଲେ ।

ଭାବିଲେ ଅକର୍ମଙ୍କର ମନ ସନ୍ତାପିତ ହେବାର କାରଣ କି ? ମୋର ଉଦରକୁ ମୁଁ ଚିରିପକାଏଁ । ଏହାକହି ଉଦରକୁ ଚିର ବସିଲେ ବିଶେଶ୍ୱର ମହାଦେବ ଅକାଶ ବାଣୀ କଲେ । ' ରେ ହନୁମନ୍ତ ମହାକଷ୍ଟକାରକ ' । ଏହା ଶୁଣିକରି ଅଞ୍ଜନୀ ସମୀପବର୍ତ୍ତିନୀ ହେଲେ । ଶିବ କହିଲେ ଏହା ପ୍ରମାଣକଥାନେଇ ମନରେ ରଖ ମୋର ଏକାଂଶରୁ ତୋରଗର୍ଭରେ ପୃଥିବୀର ପ୍ରଶଂସାକାରକ ପୁତ୍ରଜନ୍ମ ହେବ । ଶ୍ରୀରାମ ଭକ୍ତ ସାହସିକ ଧୀଶକ୍ତିବାନ୍ ବିଖ୍ୟାତ ହନୂମନ୍ତଙ୍କର ତବ ଗର୍ଭସ୍ଥିତ ପୁତ୍ର ମମ ଏକାଦଶରୁଦ୍ର ଧାରକରେ ଜାତ ହେବ । ଦେବତାଙ୍କ କାର୍ଯ୍ୟ ସିଦ୍ଧି ସଂଗ୍ରାମରେ ଯୁଦ୍ଧର ବୀରମୂର୍ତ୍ତିଧାରକୋପୃଷ୍ଟ ହେବ । ଅଞ୍ଜନୀ କହିଲେ ହେପ୍ରଭୁ ମୁଁ ଅବଳା ନିର୍ଦୋଷରେ ମୋର ପ୍ରତି ଦୋଷ ଲାଞ୍ଛନା ରହିବାର ଏହା ବିଚାର କରନ୍ତୁ ।

ଅକାଶବାଣୀ କେଶରୀନାମକ କପୀନ୍ଦ୍ର ମହାପ୍ରକାଣ୍ଡ ରୂପରେ ଶମ୍ଭୁସେବାରେ ମଗ୍ନ ଅଛନ୍ତି । ଏଠାରେ ଅଞ୍ଜନୀମଧ୍ୟ ତପଯୋଗରେ ରହିଥିଲେ । ଅନ୍ୟଅଡ଼େ କେଶରୀକପିନ୍ଦ୍ର ତପସ୍ୟା ସାଧନରେ ପ୍ରବୃତ୍ତ ଥିଲେ । ହରଅଜ୍ଞାକ୍ରମେ ଧର୍ମ ଚନ୍ଦ୍ରାଦେବୁ ଏଠାରେ ଉଭୟଙ୍କର

ପାଣିଗ୍ରହଣ ସମ୍ପନ୍ନ ହେଲା । ଏହାର ପ୍ରସାଦ ତ୍ରିଲୋକରେ ବ୍ୟାପ୍ତ ହେଲା । ଦେବତା ମୁନିଗଣ ସର୍ବେ ଆନନ୍ଦ ପ୍ରକାଶ କଲେ । ଏଠାରୁ ଅଞ୍ଜନଙ୍କ ଉଦରରୁ ମହାବୀର ହନୁମନ୍ତ ଗର୍ଭାସ୍ତୁ ଦେବତାଙ୍କର ସନ୍ନାଦ୍‌ରେ ବିଷ୍ଣୁଙ୍କର ଭକ୍ତ ମହାବଳବନ୍ତ ମୂର୍ତ୍ତିଧାରକ ହୋଇ ଜନ୍ମ ହେଲେ ।

